ପ୍ରକାଶକ : କମଳ ପ୍ରକାଶନ, ବାଲୁବଜାର, କଟକ - ୨

ମୁଦ୍ରକ : ସୁରୁଚି ପ୍ରିଣ୍ଟର୍ସ, ଖଟବିନ୍ ସାହି, କଟକ-୧

ପ୍ରଥମ ସଂସ୍କରଣ : ୧୯୯୬, ମୂଲ୍ୟ : ଟ. ୮/-

## ସୂଚୀପତ୍ର



—

# ଏକତା ହିଁ ବଳ

ଜଣେ ଚାଷୀ ଥିଲା । ସେ ଭାରି ପରିଶ୍ରମୀ । ଲୋକଙ୍କ ମନ ନେଇ କାମ କରେ । ସାଇପଡ଼ିଶାମାନେ ତାକୁ ଭଲପାଉଥିଲେ । ସେମାନଙ୍କ ସାହାଯ୍ୟରେ ସେ ଭଲ ଫସଲ ଅମଳ କରୁଥିଲା । କ୍ରମେ ସେ ବୁଢ଼ା ହୋଇ ଆସିଲା; ତା'ର ବଳ ଭାଜିଲା— କାମକୁ ଆଉ ପାରିଲାନାହିଁ ।

ବୁଢ଼ାର ଚାରିଟି ପୁଅ ଥିଲେ । ପୁଅମାନେ ଦେଖିବାକୁ ଯେପରି ସୁନ୍ଦର ସେହିପରି ବଳବାନ୍ । ପଡ଼ୋଶୀମାନେ କହିଲେ, "ପୁଅମାନେ ପାରିଗଲେଣି । ଏଣିକି ବୁଢ଼ା ଘରେ ବସି ମାଳି ଗଡ଼ାଇବ । ପୁଅମାନେ କାମ ଧନ୍ଦା କରି ବାପକୁ ପୋଷିବେ । ବୁଢ଼ାର ଆଉ ଚିନ୍ତା କ'ଣ ?"

କିନ୍ତୁ ଅସଲରେ ପୁଅ ଚାରିଟି ଅଯୋଗ୍ୟ ଥିଲେ । ସେମାନଙ୍କ ଲାଗି ବୁଢ଼ାର ବେଶି ଚିନ୍ତା । ସେମାନେ ଦିନରାତି ଆପଣା ଭିତରେ କଳିଗୋଳ କରୁଥିଲେ । କୌଣସି ବିଷୟରେ ସେମାନେ ଏକମନ ହୋଇପାରୁନଥିଲେ । ବାପ କୌଣସି କାମ କରିବାକୁ କହିଲେ ପୁଅମାନେ କଳି କରି କାମଟିକୁ ଭଣ୍ଡୁର କରିଦେଉଥିଲେ ।

ଥରେ ବୁଢ଼ା ପୁଅମାନଙ୍କୁ ଟଙ୍କାଦେଇ ଗୋଟାଏ ବଳଦ କିଣି ଆଣିବା ପାଇଁ ପଠାଇଲା । ହାଟରେ ଅନେକ ବଳଦ ଥିଲେ । ଜଣେ ପୁଅ କହିଲା, କାଳିଆ ବଳଦ ନେବା । ଆଉ ଜଣେ କହିଲା— କଷରା ନେବା । ଆଉ ଜଣେ କହିଲା— ନାହିଁ ଧଳା ନେବା । ଚତୁର୍ଥ ଜଣକ କହିଲା— କାଞ୍ଚିଆ ବଳଦ ଭଲ । ଚାରିଭାଇ ବଳଦର ରଙ୍ଗ ବିଷୟରେ ଏକମନ ହୋଇନପାରି ବଳଦ ନ କିଣି ଫେରିଆସିଲେ ।

ପ୍ରତି ବିଷୟରେ ପୁଅମାନଙ୍କ ଭିତରେ ଏହିପରି କଳି ହେଉଥିବାରୁ ବୁଢ଼ା ମନରେ ଆଦୌ ଶାନ୍ତି ନ ଥିଲା । ପୁଅମାନେ ବି କୌଣସି କାମ କରିପାରୁନଥିଲେ । ସେମାନଙ୍କୁ ଶିକ୍ଷା ଦେବା ପାଇଁ ବୁଢ଼ା ଦିନେ ଗୋଟିଏ ଉପାୟ କଲା ।



ବୁଢ଼ା ଗୁଡ଼ିଏ କାଠି ଏକାଠି ବାନ୍ଧି ବିଡ଼ାଟିଏ କଲା । ତା'ପରେ ସେ ପୁଅମାନଙ୍କୁ ଜଣ ଜଣ କରି ଡାକି କହିଲା, "ଏ କାଠିବିଡ଼ାଟିକୁ ଭାଙ୍ଗିଲୁ ।" ପ୍ରତ୍ୟେକ ପୁଅ ଖୁବ୍ ଚେଷ୍ଟା କଲେ, କିନ୍ତୁ କେହି ଭାଙ୍ଗି ପାରିଲେ ନାହିଁ ।

ତହୁଁ ବୁଢ଼ା ପୁଅମାନଙ୍କୁ ପାଖରେ ବସାଇ ବିଡ଼ାଟିକୁ ଫିଟାଇ ଦେଲା ଓ ଜଣକୁ ଖଣ୍ଡିଏ ଖଣ୍ଡିଏ କାଠି ଦେଇ ଭାଙ୍ଗିବାକୁ କହିଲା । ପୁଅମାନେ ଏଥର ଅତି ସହଜରେ କାଠିଟିମାନ ଭାଙ୍ଗିଦେଲେ ।

ବୁଢ଼ା ଏହା ଦେଖାଇ ସେମାନଙ୍କୁ ବୁଝାଇ କହିଲା, "ଦେଖିଲ ତ, ଖଣ୍ଡିଏ ଖଣ୍ଡିଏ କାଠି ଅଲଗା ଥିଲାବେଳେ ତାକୁ ଭାଙ୍ଗିଦେବା କେଡ଼େ ସହଜ ହେଲା । କିନ୍ତୁ ସେଇ କାଠିଗୁଡ଼ିକର ବିଡ଼ାଟିକୁ କେହି ଭାଙ୍ଗିପାରିଲନାହିଁ । ସେହିପରି ତୁମେମାନେ ଏକମନ ହୋଇ କାମ କଲେ କେହି ତୁମର କିଛି କ୍ଷତି କରିପାରିବ ନାହିଁ । ତୁମେମାନେ ସବୁ କାମ ସୁରୁଖୁରୁରେ କରିପାରିବ । ତୁମେମାନେ ଆପଣା ଆପଣା ଭିତରେ କଳି କଲେ ଯେ କେହି ତୁମର ଅମଙ୍ଗଳ କରିପାରିବ; ତୁମେମାନେ କୌଣସି କାର୍ଯ୍ୟ କରିପାରିବନାହିଁ ।"

ବାପର କଥା ବୁଝି ସେହିଦିନଠାରୁ ପୁଅମାନେ ମିଳିମିଶି କାମ କଲେ । କୁଟୁମ୍ବଟି ସୁଖରେ ଚଳିଲା ।

"ଏକତା ଅଟେ ମହାବଳ, ସେ ବଳେ ଜିଣ ଭୂମଣ୍ଡଳ ।"

## ଚୋରାଉ ଚୋରାଉ ବଡ଼ ଚୋର

ଦିନେ ଗୋଟିଏ ପିଲା ତା' ସାଥିମାନଙ୍କ ସାଙ୍ଗରେ ଖେଳୁଥିଲା । ଗୋଟିଏ ପିଲାର ଛୋଟ ପେଣ୍ଡୁଟିଏ ଲୁଚାଇ ସେ ଘରକୁ ନେଇଗଲା । ତା'ର ମାଆ ପେଣ୍ଡୁଟି ଦେଖି ଖୁସିହୋଇ କହିଲା, "ଭଲ ପେଣ୍ଡୁଟିଏ ହେଇଚି । ଘରେ ରଖିଦେ । ସାବଧାନ ହୋଇ ଖେଳିବୁ, ଦାଣ୍ଡରେ ଆଉ କାହାକୁ ଦେଖାଇବୁନାହିଁ ।" ପୁଅ ପେଣ୍ଡୁଟି ଚୋରି କରି ଆଣିଥିବାରୁ ତା' ମାଆ ତାକୁ ଗାଳିଦେଲା ନାହିଁ କି ଫେରାଇ ଦେବାକୁ କହିଲା ନାହିଁ– ବରଂ ଏମିତି ତାକୁ ପ୍ରଶଂସା କଲା ।

ପିଲାଟି ପଢ଼ିବାକୁ ସ୍କୁଲକୁ ଗଲା । ସୁବିଧା ପାଇଲେ ଅନ୍ୟ ପିଲାଙ୍କର ସିଲଟ, ବହି, ପେନ୍‌ସିଲ ପ୍ରଭୃତି ଚୋରି କରି ଆଣିଲା ।

ମାଆ ସେସବୁ ଦେଖି ପୁଅକୁ ସାବାସ୍ ଦିଏ। ପୁଅ ବଡ଼ହେବାରୁ ଚୋରି ଧନ୍ଦାରେ ମାତିଲା। କାହା ଘରୁ କଂସାବାସନ, କାହା ଘରୁ ଲୁଗାପଟା, କାହା ଘରୁ ଧାନ ଚାଉଳ ଚୋରିକରି ଘରକୁ ଆଣିଲା। ମାଆ ପୁଅକୁ ଦିନେହେଲେ କହିଲା ନାହିଁ ଯେ ଚୋରି କରିବା ଖରାପ କାମ –ଏପରି କାମ କରନା।

କ୍ରମେ କ୍ରମେ ସେ ଆହୁରି ବଡ଼ ବଡ଼ ଚୋରି କରିବାକୁ ସାହସକଲା। ଥରେ ସେ ଜଣେ ଧନୀଲୋକ ଘରେ ପଶି ଗୋଟିଏ ସ୍ତ୍ରୀଲୋକର ଦେହରୁ ଅଳଙ୍କାର ଚୋରି କରୁଥିଲା। ଏହି ସମୟରେ ସ୍ତ୍ରୀଲୋକଟିର ନିଦ ଭାଙ୍ଗିଯିବାରୁ ସେ ଉଠିପଡ଼ି ପାଟିକଲା। ଘରର ଚାକର ଓ ଅନ୍ୟମାନେ ଉଠିଆସି ଚୋରକୁ ଧରିଲେ।

ପୋଲିସ୍ ଆସି ଚୋରକୁ ଧରିନେଲା। ବିଚାରରେ ତାକୁ ପାଞ୍ଚବର୍ଷ ଜେଲଦଣ୍ଡ ହେଲା। ଦଣ୍ଡ ଆଦେଶ ପରେ ଦୁଇଜଣ କନେଷ୍ଟବଲ ଚୋର ହାତରେ ହାତକଡ଼ା ଦେଇ, ତାକୁ ଜେଲଖାନାକୁ ନେଲେ। ଅନ୍ୟ ଦେଖଣାହାରୀଙ୍କ ସାଙ୍ଗରେ ଚୋରର ମାଆ କାନ୍ଦିକାନ୍ଦି ଚାଲିଥାଏ। ଏହି ସମୟରେ ସେ ଚୋର ଯୁବକଟି କନେଷ୍ଟବଲ ଦୁହିଁଙ୍କୁ କହିଲା, "ଭାଇ, ଏଇ ମୋର ମାଆ କାନ୍ଦିକାନ୍ଦି ଯାଉଚି, ତାକୁ ମୁଁ ପଦେ କଥା କହି ଯିବି। ପାଞ୍ଚବର୍ଷ ଯାଏଁ ଜେଲଖାନାରେ ତ ରହିବି– ମାଆକୁ ଆଉ ଦେଖି ପାରିବି ନାହିଁ। ଦୟାକରି ମତେ ଏତିକି ସୁବିଧା ଦିଅ।"

କନେଷ୍ଟବଳ ଦୁହେଁ ତା'ର ଅନୁରୋଧ ରଖିଲେ। ମାଆ ପୁଅ ପାଖକୁ ଆସିଲା। ପୁଅ ତା' କାନ ପାଖକୁ ମୁହଁ ନେବାରୁ ମାଆ ଭାବିଲା ଯେ ପୁଅ ବୋଧେ କିଛି ଗୋପନକଥା କହିବ। କିନ୍ତୁ ହଠାତ୍ ସେ ମାଆର କାନକୁ ଦାନ୍ତରେ କାମୁଡ଼ିଧରି ଏପରି ଜୋର୍‌ରେ ଟାଣିଲା ଯେ ମା'ର କାନଟା ଛିଡ଼ିଯାଇ ଝରଝର ରକ୍ତ ବୋହିଲା। ମାଆ ଚିତ୍କାର କରି ପୁଅକୁ ଗାଳିଦେଲା। ଲୋକେ

ମଧ୍ୟ ତାକୁ ଗାଳିଦେଇ କହିଲେ, "ତୁ ମଣିଷ ନୁହଁ, ପଶୁଟେ। ଚୋରିକରି ତ ଜେଲ୍ ଯାଉଛୁ, ସେଥିରେ ପୁଣି ମାଆଟାର କାନକୁ କାମୁଡ଼ି ଛିଣ୍ଡାଇଦେଲୁ।"



ଚୋର ଯୁବକ କହିଲା, "ଏ ମୋର ମାଆ ନୁହେଁ ଯେ ମୋର ଶତ୍ରୁ। ଆଜି ମୁଁ ତାହାରି ଯୋଗେ ଜେଲ୍ ଯାଉଛି। ପିଲାଦିନେ ମୁଁ ଛୋଟ ଛୋଟ ଚୋରି କଲାବେଳେ ସେ କେବେ ହେଲେ ମୋତେ ମନାନକରି ବରଂ ଖୁସିହେଉଥିଲା। ପରେ ବଡ଼ ବଡ଼ ଚୋରି କରିବାରୁ ସେ ମୋତେ ପ୍ରଶଂସା କରୁଥିଲା। ତା'ରି ଯୋଗୁ ମୋର ଆଜି ଏ ଦଶା।" ଯୁବକର ଏ କଥା ଶୁଣି ଲୋକେ ତା'ର ମାଆକୁ ଛି ଛି କଲେ।

"ମୂଳରୁ ଦୂରକର ଦୋଷ, ନୋହିଲେ ଶେଷେ ଯିବ ନାଶ।"

# ସୁନ୍ଦର ଶିଙ୍ଗ ପାଇଁ ହରିଣ ମଲା

ବଣ ଭିତରେ ଗୋଟିଏ ହରିଣ ରହୁଥିଲା । ଦିନେ ସେ ଝରଣାରେ ପାଣି ପିଉ ପିଉ ଝରଣାର ପାଣିରେ ନିଜର ଛାଇକୁ ଦେଖି ଭାବିଲା, "ବାଃ, ମୋର ଶିଙ୍ଗ ଯୋଡ଼ିକ କେଡ଼େ ସୁନ୍ଦର ! ଉପରକୁ ଉପରକୁ ଶାଖା ମେଲିଯାଇଛି । ଅଗଗୁଡ଼ିକ କି ମୁନିଆ ! କି ଚିକ୍‌କଣ ! ଆଉ କେଉଁ ଜୀବର ଏଡ଼େ ସୁନ୍ଦର ଶିଙ୍ଗ ନଥିବ ।"

ଏହାପରେ ହରିଣ ନିଜର ଗୋଡ଼କୁ ଚାହିଁ ଭାବିଲା, "ବିଧାତା ମୋତେ ଏଡ଼େ ସୁନ୍ଦର ଶିଙ୍ଗ ଦେଲା— କିନ୍ତୁ ତା' ସାଥିକୁ ଏପରି ସରୁ ସରୁ ଗୋଡ଼ କାହିଁକି ଦେଲା ? ଏହାକୁ ଦେଖିଲେ ମୋତେ ଲାଜମାଡୁଛି । ମୋ ଦେହକୁ ଏ ଗୋଡ଼ କେଡ଼େ ଅସୁନ୍ଦର ଦିଶୁଛି ! ଗୋଡ଼ଗୁଡ଼ିକ ଶିଙ୍ଗପରି ସୁନ୍ଦର ହୋଇଥିଲେ ପଶୁମାନଙ୍କ ଭିତରେ ସବୁଠୁ ସୁନ୍ଦର ଜୀବ ବୋଲି ମୁଁ ପ୍ରଶଂସା ପାଉଥାନ୍ତି ।"

ସେ ନିଜର ସରୁ ଗୋଡ଼ ବିଷୟରେ ଏପରି ମନ ଦୁଃଖ କରୁକରୁ ହଠାତ୍ ଗୋଟିଏ ବାଘ ଦେଖି ପ୍ରାଣ ବିକଳରେ ଦୌଡ଼ିଲା ଓ ବାଘଠାରୁ ବହୁତ ଦୂରକୁ ଚାଲିଗଲା । ସେ ଭାବିଲା, "ମୋର ଗୋଡ଼ଗୁଡ଼ିକ ସରୁ ଓ ଅସୁନ୍ଦର ହେଲେ କଅଣ ହେବ, ସେହି ଗୋଡ଼ ମୋର ପ୍ରାଣ ରଖିଲା ।"

ଖୋଲା ପଡ଼ିଆ ପାରହୋଇ ହରିଣ ବଣ ଭିତରେ ଦୌଡ଼ିଲା । ବାଘ ମଧ ତା' ପଛରେ ଦୌଡ଼ିଲା । ମାତ୍ର ଗଛ ବୁଦା ଭିତରେ ହରିଣ ବେଗରେ ଦୌଡ଼ି ପାରିଲା ନାହିଁ । ବାଘ ତା' ପାଖକୁ ଲାଗିଆସିଲା । ଏହି ସମୟରେ ହରିଣର ଶିଙ୍ଗ ଗୋଟିଏ ଲଟାରେ ଛନ୍ଦିହୋଇଯିବାରୁ ସେ ଅଟକି ରହିଗଲା । ଲଟା ଭିତରୁ ଶିଙ୍ଗ

ବାହାର କରିବା ପାଇଁ ଚେଷ୍ଟା କରୁ କରୁ ବାଘ ତା' ଉପରକୁ କୁଦିପଡ଼ି ତା' ଗଳାକୁ ଧରିଲା।

ଜୀବନ ଯିବା ବେଳେ ହରିଣ ଭାବିଲା, ''ମୋର ଗୋଡ଼ ଅସୁନ୍ଦର ବୋଲି ମୁଁ ତାକୁ ନିନ୍ଦାକରୁଥିଲି, କିନ୍ତୁ ସେ ଗୋଡ଼ ମୋତେ ବାଘ ମୁହଁରୁ ରକ୍ଷାକରିଥିଲା। କିନ୍ତୁ ଯେଉଁ ସୁନ୍ଦର ଶିଙ୍ଗ ଘେନି ମୁଁ ଗର୍ବ କରୁଥିଲି, ସେଇ ଶିଙ୍ଗ ଏବେ ମୋର ମରଣର କାରଣ ହେଲା। ଯାହା ଦେଖିବାକୁ ସୁନ୍ଦର, ତାହା ପ୍ରକୃତରେ ସୁନ୍ଦର ନୁହେଁ। ଯାହାର କାମ ସୁନ୍ଦର ତାହାହିଁ ପ୍ରକୃତରେ ସୁନ୍ଦର।

## ମୂର୍ଖକୁ ନିଜ ପ୍ରଶଂସା ଭଲଲାଗେ

ଦିନେ ଗୋଟିଏ କୁଆ ଆହାର ଖୋଜି ବୁଲୁଥିଲା। ଏକ ମାଂସ ଦୋକାନରୁ ସେ ଖଣ୍ଡିଏ ମାଂସ ଧରି ଉଡ଼ିଯାଇ ଗଛଡାଳରେ ବସିଲା। ସେହି ଗଛ ମୂଳରେ ବିଲୁଆଟିଏ ରହୁଥିଲା। ସେ ଦେଖିଲା, କାଉଟିଏ ଥଣ୍ଟରେ ଖଣ୍ଡିଏ ମାଂସ ଧରି ଗଛଡାଳରେ ବସିଛି। ମାଂସ ଖଣ୍ଡିକ ଖାଇବା ପାଇଁ ତା' ଜିଭରୁ ଲାଳ ବୋହିଲା। କିପରି ସେ ମାଂସ ଖଣ୍ଡକ ପାଇବ ସେଥିପାଇଁ ସେ ଗୋଟିଏ ଉପାୟ ପାଞ୍ଚିଲା।

ସେ କୁଆକୁ ଶୁଣାଇ କହିଲା, ''ବାଃ, ତୁମେ କେଡ଼େ ସୁନ୍ଦର! ତୁମର ରଙ୍ଗଟି କି ଚକ୍‌ଚକ୍ ଦିଶୁଛି। ପକ୍ଷୀମାନଙ୍କର ତୁମେ ରାଣୀ। ଆଃ! ତୁମର ଥଣ୍ଟଟି କେଡ଼େ ସୁନ୍ଦର ଦେଖାଯାଉଚି। ଆଉ କେଉଁ ପକ୍ଷୀର ଏଭଳି ଲମ୍ବ ଓ ସୁନ୍ଦର ଥଣ୍ଟ ମୁଁ ଦେଖିନଥିଲି। ତୁମର ଗୋଲ ଗୋଲ ସୁନ୍ଦର ଆଖି ଯୋଡ଼ିକର ତୁଳନା ନାହିଁ। ଭଗବାନ ତୁମକୁ ଏଡ଼େ ସୁନ୍ଦର କରି ଗଢ଼ିଛନ୍ତି। ଖାଲି ତୁମକୁ

ରାବିବାର ଶକ୍ତି ଦେଇଥିଲେ ତୁମକୁ ସମସ୍ତେ ଆଦର କରନ୍ତେ। ପକ୍ଷୀମାନେ ତୁମକୁ ରାଣୀ କରନ୍ତେ।''

କୁଆ ଡାଳରେ ବସି ବିଲୁଆ ମୁହଁରୁ ଏପରି ପ୍ରଶଂସା ଶୁଣି ଭୋଳହୋଇଗଲା। ସେ ଭାବିଲା, ''ଏ ବିଲୁଆ ମନେକରୁଛି ଯେ ମୁଁ ରାବିପାରେ ନାହିଁ। ଏହାକୁ ମୋର ସ୍ୱର ଶୁଣାଇ ଦେବା



ଦରକାର।'' ଏହିପରି ବିଚାରି ସେ ରାବି ଉଠିଲା– ''କାଆ, କାଆ।'' କୁଆର ପାଟି ଫିଟିବା ମାତ୍ରେ ତା' ମୁହଁରୁ ମାଂସଖଣ୍ଡିକ ତଳେ ଖସିପଡ଼ିଲା ଓ ବିଲୁଆ ସଙ୍ଗେ ସଙ୍ଗେ ସେ ଖଣ୍ଡି ଖାଇଦେଇ କହିଲା, ''ହଁ, ମୁଁ ମୋର ଭୁଲ ବୁଝିପାରିଲି; ତୁମର ସ୍ୱରଟି ମଧ ବେଶ୍ ମଧୁର, କିନ୍ତୁ ତୁମର ବୁଦ୍ଧିଟି ଊଣା।''

କୁଆ ଏବେ ଆପଣାର ବୋକାମି ବୁଝିପାରିଲା। ସେ ମନ ଦୁଃଖରେ ଭାବିଲା, ''ସତରେ ମୋର ବୁଦ୍ଧି ଊଣା। ମୋର

ଯଦି ବୁଦ୍ଧି ଥାଆନ୍ତା ତେବେ ମୁଁ କଅଣ ବିଲୁଆର ମିଛ ପ୍ରଶଂସାରେ ଫୁଲିଯାଇ ତାକୁ ମୋର ସ୍ୱର ଶୁଣାଇଥାନ୍ତି ନା ବିଲୁଆ ମୋର ମାଂସଖଣ୍ଡକ ପାଇଥାନ୍ତା ?''

## ଯେମିତି ଦେବ ସେମିତି ପାଇବ

ବଣ ଭିତରେ ଗୋଟିଏ କୋକିଶିଆଳି ରହୁଥିଲା । ଗୋଟିଏ କାଣ୍ଡିଆବଗ ସହିତ ତା'ର ବନ୍ଧୁତା ହେଲା । ଦିନେ କୋକିଶିଆଳିଟି ଭୋଜି ଖାଇବା ପାଇଁ ତା'ର ବନ୍ଧୁକୁ ତା' ଘରକୁ ଡାକିଲା । କାଣ୍ଡିଆବଗ ଅତି ଆନନ୍ଦ ମନରେ ଠିକ୍ ସମୟରେ କୋକିଶିଆଳିର ଘରେ ଯାଇ ପହଞ୍ଚିଲା । କୋକିଶିଆଳି ଗୋଟିଏ ବଡ଼ ଥାଳିରେ ପତଳା କ୍ଷୀରି ପରଷିଦେଇ କାଣ୍ଡିଆବଗକୁ ଡାକି କହିଲା, ''ଆସ, ଆମେ ଦୁଇ ବନ୍ଧୁ ଏକାଠି ଖାଇବା ।'' ଦୁହେଁ ଖାଇ ବସିଲେ । କିନ୍ତୁ ବଗ ଯେତେ ଚେଷ୍ଟା କଲେ ହେଁ ତା' ଥଣ୍ଟରେ କ୍ଷୀରି ଆସିଲା ନାହିଁ– ଥାଳିରେ ଖାଲି ଥଣ୍ଟ ମାରିବା ହିଁ ସାରହେଲା । ଅଥଚ କୋକିଶିଆଳି ଚାକୁଚାକୁ କରି କ୍ଷୀରି ଚାଟି ଖାଇଲାଗିଲା ।

କାଣ୍ଡିଆବଗ କୋକିଶିଆଳିର ଚାଲାକି ଜାଣିପାରିଲା, କିନ୍ତୁ କିଛି କହିପାରିଲା ନାହିଁ । ଥାଳିରୁ କ୍ଷୀରିତକ ଚାଟିସାରି କୋକିଶିଆଳି ବଗକୁ କହିଲା, ''କାହିଁ, ତୁମେ ତ କିଛି ଖାଇଲ ନାହିଁ? କ୍ଷୀରି କଅଣ ଭଲ ଲାଗିଲା ନାହିଁ? ମୋତେ ତ ବେଶ୍ ଭଲ ଲାଗୁଛି ।''

କାଣ୍ଡିଆବଗ ଭାବିଥିଲା ଯେ ବନ୍ଧୁଘରେ ପେଟପୂରା ଭଲ ଭୋଜନ ମିଳିବ । କିନ୍ତୁ କୋକିଶିଆଳି ଯେ ତାକୁ ଏପରି ଠକିବ ଓ ସେ ଭୋକ-ଉପାସରେ ଘରକୁ ଫେରିବ, ଏକଥା ସେ ଭାବିନଥିଲା ।

ବଗ ମନଦୁଃଖରେ ଭୋକରେ ଘରକୁ ଫେରିଲା ।

ଏହାର କିଛି ଦିନ ପରେ କାଣ୍ଡିଆବଗ ତା'ର ବନ୍ଧୁ କୋକିଶିଆଳିକୁ ତା' ଘରକୁ ଖାଇବାକୁ ଡାକିଲା । କୋକିଶିଆଳି ଖୁସି ହୋଇ କାଣ୍ଡିଆବଗ ଘରେ ପହଞ୍ଚିଲା । ବଗ କୋକିଶିଆଳିକୁ କହିଲା, "ଆସ ଭାଇ, ଆମେ ଦୁହେଁ ଏକାସାଙ୍ଗରେ ଖାଇବା ।"

କାଣ୍ଡିଆବଗ ସୁରେଇ ଭଳି ଏକ ଜାଗାରେ ସିଝାମାଂସ ରଖିଦେଇ କୋକିଶିଆଳିକୁ କହିଲା, "ବନ୍ଧୁ, ଆସ ଖାଇବା ।"



ସୁରେଇର ମୁହଁଟା ନଳପରି ସରୁ ହୋଇଥିବାରୁ କୋକିଶିଆଳି ଆଦୌ ମାଂସ ଖାଇ ପାରିଲା ନାହିଁ । ସେ କେବଳ ସୁରେଇର ବାହାରଟାକୁ ଚାଟୁଥାଏ । ବେଳେବେଳେ ଖଣ୍ଡେ ମାଂସ କାଣ୍ଡିଆବଗର ଥଣ୍ଟରୁ ଖସିପଡ଼ିଲେ ତାକୁ ଖାଉଥାଏ । ଏଣେ ବଗ ସୁରେଇ ଭିତରେ ଥଣ୍ଟ ପୂରାଇ ଖଣ୍ଡକୁ ଖଣ୍ଡ ମାଂସ ଆଣି ଗିଳିଦେଉଥାଏ ।

ଅଳ୍ପ ସମୟ ଭିତରେ ସେ ସବୁତକ ମାଂସ ଖାଇଦେଲା ।

ଖାଇସାରି କାଣ୍ଡିଆବଗ କୋକିଶିଆଳିକୁ ପଚାରିଲା, ''କାହିଁ, କିଛି ତ ଖାଇଲ ନାହିଁ ଭାଇ ? ମାଂସଟା କଅଣ ଭଲ ରନ୍ଧା ହୋଇନାହିଁକି ? ମତେ କିନ୍ତୁ ଖୁବ୍ ଭଲଲାଗିଲା ।''

କୋକିଶିଆଳି ଲାଜରେ କହିଲା, ''ମୁଁ ଭାବିଥିଲି ମୁଁ ଏକା ଚାଲାକ । ଏବେ ଦେଖୁଛି, ତୁମେ ମୋଠାରୁ ଅଧିକ ଚାଲାକ । ମୁଁ ଉପାସ ରହିଲି ବୋଲି ତୁମକୁ ଦୋଷ ଦେଉନାହିଁ । ମୁଁ ତୁମପ୍ରତି ଯେପରି ବ୍ୟବହାର କରିଥିଲି, ତା'ର ଠିକଣା ପ୍ରତିଫଳ ପାଇଲି ।''

## ପିମ୍ପୁଡ଼ି ଓ ଝିଣ୍ଟିକା

ବସନ୍ତ ସମୟ । ଚାରିଆଡ଼େ ଖୋଲା ସୂର୍ଯ୍ୟକିରଣ ପଡ଼ିଥାଏ । ଗଛମାନଙ୍କରେ ପକ୍ଷୀମାନେ ମଧୁର ସ୍ୱରରେ ରାବୁଥାନ୍ତି । ଫସଲ ଅମଳ ହେଉଥିବାରୁ ଲୋକଙ୍କ ମନରେ ଆନନ୍ଦ । ପଶୁପକ୍ଷୀ, କୀଟପତଙ୍ଗ ସବୁରି ମନ ଆନନ୍ଦ । କାହାରି କିଛି ଅଭାବ ନାହିଁ ।

ଗୋଟିଏ ଝିଣ୍ଟିକା ଘାସ ପଡ଼ିଆରେ ବସି ଆନନ୍ଦରେ ଝିଁ ଝିଁ ରାବୁଥିଲା । ବେଳେବେଳେ ଡେଇଁ ଡେଇଁ ନାଚୁଥିଲା । ଭୋକ ହେଲେ ଆଖପାଖରୁ କିଛି ଖାଇଦେଇ ପୁଣି ଡେଉଁଥିଲା, ରାବୁଥିଲା ।

ଏହିପରି କେତୋଟି ଦିନ ଗଲା । ଦିନେ ସେ ବସି ରାବୁଛି, ଏହି ସମୟରେ ସେ ଗୋଟିଏ ପିମ୍ପୁଡ଼ିକୁ ଦେଖିଲା । ପିମ୍ପୁଡ଼ି ଗୋଟିଏ ଗୋଟିଏ କରି ଚାଉଳ ବୋହି ନେଇ ଆପଣା ଗାତରେ ରଖୁଥାଏ । ସେ ଅନବରତ କାମ କରି ଚାଲିଥାଏ । ତାହାକୁ ଦେଖି ଝିଣ୍ଟିକା

କହିଲା, ''ପିମ୍ପୁଡ଼ି ଭାଇ, ଟିକିଏ ଶୁଣିଯାଅ। ଏଭଳି ସୁନ୍ଦର ପାଗରେ ତୁମେ ଏମିତି କାମରେ ଲାଗିଛ କ'ଣ ? ଆସ, ଖେଳି ବୁଲି ମଜାକର।''

ପିମ୍ପୁଡ଼ି ଚାଲି ଯାଉ ଯାଉ କହିଲା, ''ବେଳ ନାହିଁରେ ଭାଇ। ବର୍ଷାଦିନ ପାଇଁ ମୁଁ ଆହାର ସଞ୍ଚି ରଖୁଚି। ତୁମେ ମଧ ଏତିକିବେଳେ କିଛି ସଞ୍ଚି ରଖ। ବର୍ଷାଦିନେ ପଦାକୁ ବାହାରି ହେବନାହିଁ– ଆହାର ମଧ ମିଳିବ ନାହିଁ। ଖାଦ୍ୟ ରଖିସାରି ତା'ପରେ ଯେତେ ମନ ଗୀତ ଗାଉଥାଅ।''

ଝିଣ୍ଟିକା ହସି ହସି କହିଲା, ''ଓଃ ! ଏଇଥିପାଇଁ ତୁମେ ଏତେ ମିହନ୍ତ କରୁଚ ? ବର୍ଷାଦିନ ତ କାହିଁ କେତେ ଦୂରରେ ଅଛି– ସେଥିପାଇଁ ଆଜିଠୁଁ ଏତେ ଚିନ୍ତା କାହିଁକି ? ବର୍ଷାଦିନ ଆସିଲେ ସେତେବେଳ କଥା ଦେଖାଯିବ।'' ଏହା କହି ସେ ପୁଣି ତା'ର ଖେଳରେ ଲାଗିଗଲା।

ଚାହୁଁ ଚାହୁଁ ବର୍ଷାଦିନ ଆସିଗଲା। ଚାରିଆଡ଼େ ପାଣି ଜମିଗଲା। ଜୀବଜନ୍ତୁ ପଦାକୁ ବାହାରି ପାରିଲେ ନାହିଁ। ନିଜ ନିଜ ବସା ଭିତରେ ପଡ଼ିରହିଲେ। ପିମ୍ପୁଡ଼ି ତା' ବସାରେ ଯଥେଷ୍ଟ ଚାଉଳ ସଞ୍ଚି ରଖିଥିଲା– ସେ ତାକୁଇ ଖାଇ ନିଶ୍ଚିନ୍ତରେ ରହିଲା।

ହେଲେ ଝିଣ୍ଟିକାର ଦୁଃଖ କହିଲେ ନ ସରେ। ସେ ତ କିଛି ସଞ୍ଚି ନଥିଲା– ତା' ବସାରେ ଗୋଟିଏ ହେଲେ ଦାନା ନଥିଲା। ଖାଇବାକୁ ନ ପାଇ ତା' ଦେହ ଶୁଖିଗଲା। ଭଲଦିନରେ ସେ କିଛି ସଞ୍ଚି ରଖିନଥିଲା ବୋଲି ଏବେ ଭାରି ମନ ଦୁଃଖ କଲା। ଶେଷରେ ଦିନେ ଘୁଷୁରି ଘୁଷୁରି ଯାଇ ପିମ୍ପୁଡ଼ି ପାଖରେ ପହଞ୍ଚି କହିଲା, ''ଭାଇ, ଖାଇବା ବିନା ମୋ ପ୍ରାଣ ଯାଉଛି। ମୋତେ କିଛି ଖାଇବାକୁ ଦେଇ ମୋ ଜୀବନ ରକ୍ଷାକର। ମୁଁ

କାଳେ କାଳେ ତୁମ ଉପକାର ମନେରଖିବି।"

ପିମ୍ପୁଡ଼ି ତା'ର ବସାରେ ଥାଇ କହିଲା, "ଦିନେ ମୁଁ ତୁମକୁ କହିଥିଲି, 'ବର୍ଷାଦିନ ପାଇଁ ଆଗରୁ କିଛି ଆହାର ସଞ୍ଚି ରଖ।' ସେତେବେଳେ ତୁମେ ମୋ କଥା ହସରେ ଉଡ଼ାଇଦେଇଥିଲ। ନାଚିକୁଦି ଖେଳିବୁଲିଥିଲ। ଏବେ ବର୍ଷାଦିନେ ଉପାସ ରହିବା ଛଡ଼ା ତୁମର ଆଉ କଅଣ ଉପାୟ ଅଛି? ଯାଅ, ଯାଅ, ତୁମକୁ ମୁଁ ସାହାଯ୍ୟ କରିପାରିବି ନାହିଁ।"

ଝିଣ୍ଟିକା କପାଳ ଆଦରି ନିରାଶ ହୋଇ ନିଜ ବସାକୁ ଫେରିଗଲା। ତେଣୁ କୁହାଯାଏ—

"ବେଳୁ ନୋହିଲେ ସାବଧାନ, ଭୋଗିବ ଅପାର କଷଣ।"

## ଅର୍ଥ ଅନର୍ଥର ମୂଳ

ଜଣେ ବଡ଼ ଧନୀଲୋକ ଥିଲେ। ତାଙ୍କର ବହୁତ ଜମିବାଡ଼ି। ସେଥିରୁ ନାନାପ୍ରକାର ଫସଲ ଆମଦାନି ହୁଏ। ଏଇ ଫସଲ ବିକ୍ରିକରି ସେ ବହୁତ ଟଙ୍କା ପା'ନ୍ତି।

ସେ ଗରିବ ଲୋକଙ୍କୁ ଟଙ୍କା କରଜ ଦେଇ ମହାଜନୀ ବ୍ୟବସାୟ ମଧ କରନ୍ତି। ପ୍ରତିଦିନ ଲୋକେ କରଜ ନେବାକୁ ବା କରଜ ଶୁଝିବାକୁ ତାଙ୍କ ଦୁଆରକୁ ଆସନ୍ତି। ସେ ଏକୁଟିଆ ଲୋକ। ଏସବୁ ବୁଝିବାକୁ କେତେଜଣ ଗୁମାସ୍ତା ଥା'ନ୍ତି। ଟଙ୍କା ପଇସାର ହିସାବ ସେମାନେ ରଖନ୍ତି। କିନ୍ତୁ ନିଜେ ନ ବୁଝିଲେ ଗୁମାସ୍ତାମାନେ ଠକି ନେବେ, ସେଥିପାଇଁ ସେ ପ୍ରାୟ ସବୁବେଳେ କାର୍ଯ୍ୟବ୍ୟସ୍ତ ଥାଆନ୍ତି। ସାଙ୍ଗ ସୁଖଙ୍କ ସାଥିରେ ଗଳ୍ପ କରିବା, ଖେଳିବା ବୁଲିବାପାଇଁ ତାଙ୍କୁ ବେଳ ମିଳେନାହିଁ। ଏତେ ଧନ

ଥିଲେହେଁ ସେ କେବେହେଲେ ଶାନ୍ତିରେ ନଥାନ୍ତି। ଚିନ୍ତାରେ ତାଙ୍କୁ ରାତିରେ ଭଲ ନିଦ ହୁଏନାହିଁ।

ତାଙ୍କ ଘର ପାଖରେ ଗୋଟିଏ ମୋଚି ରହୁଥାଏ। ଯୋତା ତିଆରି କରିବା ଓ ପୁରୁଣା ଯୋତା ମରାମତି କରିବା ତା'ର କାମ। ଦାଣ୍ଡ ଦୁଆରେ ବସି ସେ କାମ କରିବା ସଙ୍ଗେ ଗୀତ ଗାଉଥାଏ। ହାତରେ କିଛି କାମ ନ ଥିଲେ ସାଙ୍ଗସାଥୀଙ୍କ ସହିତ ଗଳ୍ପ କରେ। ତାର ମୁହଁଟି ସବୁବେଳେ ହସହସ; ମନରେ କେତେବେଳେ ହେଲେ ଚିନ୍ତା ନ ଥାଏ।

ମୋଚିର ଏ ସୁଖଶାନ୍ତି ଦେଖି ଧନୀ ଲୋକର ମନରେ ହିଂସା ହେଲା। ଯାହାର ମନରେ ସବୁବେଳେ ଚିନ୍ତା ଓ ଅଶାନ୍ତି, ସେ ଅନ୍ୟ ଲୋକର ସୁଖଶାନ୍ତି ସହିବ ବା କିପରି ? ସେ ଦିନେ ମୋଚିକୁ ଘରକୁ ଡାକି ପଚାରିଲେ, "ଭାଇ, ବର୍ଷକୁ କେତେ ରୋଜଗାର କରୁଛ ?"

ମୋଚି କହିଲା, "ମୁଁ କଅଣ ତା'ର ହିସାବ ରଖିଛି ? ଯେଉଁଦିନ ଯାହା କମାଏ ସେଦିନ ସେତକ ଖରଚ କରିଦିଏ। ତେବେ ଯେଉଁଦିନ ଯେତିକି ମିଳେ ସେତିକିରେ ମୁଁ ସନ୍ତୁଷ୍ଟ।"

ଏହାର ପରଦିନ ଧନୀ ଲୋକଟି ମୋଚିକୁ ଗୋଟିଏ ଥଳୀ ଦେଇ କହିଲେ, "ମୁଁ ତୁମକୁ ସାହାଯ୍ୟ କରିବାପାଇଁ ଏତକ ଧନ ଦେଉଛି।" ମୋଚି ଧନ୍ୟବାଦ ଦେଇ ଥଳୀଟି ନେଲା। ଘରଭିତରେ ଫିଟାଇ ଦେଖିଲା ସେଥିରେ ହଜାରେ ଟଙ୍କା ଅଛି। ଏହାଦେଖି ସେ ଆଶ୍ଚର୍ଯ୍ୟ ହୋଇଗଲା।

ଟଙ୍କା ପାଇ ମୋଚିର ଆନନ୍ଦ କହିଲେ ନ ସରେ। ତା' ଜୀବନରେ ସେ ଏତେ ଟଙ୍କା କେବେ ଦେଖିନଥିଲା। ଏ ଟଙ୍କାରେ ସେ କଅଣ କିଣିବ ଭାବି ଭାବି ରାତିଯାକ ତାକୁ ନିଦ ହେଲାନାହିଁ।

ଦିନରେ କାମ କରିବାକୁ ବସିଲା; କିନ୍ତୁ ତା'ର ମନରେ ଚିନ୍ତା, କାଳେ ଚୋରମାନେ ଜାଣିପାରି ତା'ର ଟଙ୍କା ଚୋରାଇନେବେ। ଏତେଗୁଡ଼ାଏ ଟଙ୍କା କେଉଁଠି ଲୁଚାଇରଖିବ, ତାହା ଠିକ୍ କରିନପାରି ସେ ଚିନ୍ତିତ ହେଲା। ଏହି ଟଙ୍କା ଚିନ୍ତାରେ ତା'ର ମନରେ ଶାନ୍ତି ରହିଲା ନାହିଁ। ତା' ତୁଣ୍ଡରୁ ଆଉ ଗୀତ ଶୁଣାଗଲା ନାହିଁ।



ସେ ସବୁବେଳେ ଚିନ୍ତିତ ରହିଲା। ସାଙ୍ଗସାଥୀମାନଙ୍କୁ ଦେଖିଲେ ଏଣିକି ତାକୁ ବିରକ୍ତ ଲାଗିଲା। ମୋଟ ଉପରେ ତା'ର ସୁଖଶାନ୍ତି ଉଭେଇଗଲା। ତେଣୁ କୁହାଯାଏ – "ସନ୍ତୋଷ ଅଟେ ମହାଧନ, ଅର୍ଥ ହିଁ ଅନର୍ଥ କାରଣ।"

# କାଠୁରିଆ ଓ ଜଳଦେବତା

ଜଣେ କାଠୁରିଆ ଥିଲା । ଲୋକଟି ବଡ଼ ଗରିବ; ମାତ୍ର ସେ କେବେ ମିଛ କହୁନଥିଲା କି କାହାକୁ ଠକୁନଥିଲା । ସେ ପ୍ରତିଦିନ ବଣକୁ ଯାଇ କିଛି କାଠ ହାଣି ଆଣୁଥିଲା । ସଞ୍ଜବେଳେ ତାହାକୁ ବଜାରରେ ବିକି ଯାହା ପାଉଥିଲା ସେଥିରେ କଷ୍ଟରେ କୁଟୁମ୍ବ ଚଳାଉଥିଲା ।

ଦିନେ ସେ ବଣକୁ କାଠ ହାଣିବାକୁ ଯାଇଥିଲା । ନଈକୂଳରେ ଗୋଟାଏ ଶୁଖିଲା ଗଛ ହାଣୁ ହାଣୁ ତା' ହାତରୁ କୁରାଢ଼ିଟି ଖସିଯାଇ ନଈରେ ପଡ଼ିଗଲା । ନଈ ଖୁବ୍ ଗଭୀର ଓ ସୁଅ ଟାଣଥିଲା । କୁରାଢ଼ିଟି ପାଇବାର ଉପାୟ ନ ଦେଖି ସେ ନଈକୂଳରେ ବସି କାନ୍ଦିବାକୁ ଲାଗିଲା । ଆଉ ଗୋଟିଏ କୁରାଢ଼ି କିଣିବାକୁ ସେ କାହୁଁ ବା ପଇସା ପାଇବ ?

ଲୋକଟିର ସେ ବିକଳ କାନ୍ଦ ଶୁଣି ଜଳଦେବତା ନଈରୁ ବାହାରିଆସିଲେ । କାଠୁରିଆକୁ କାନ୍ଦିବାର କାରଣ ପଚାରିଲେ । କାଠୁରିଆ କହିଲା, "ମୋ କୁରାଢ଼ିଟି ନଈରେ ପଡ଼ିଗଲା । ଆଉ ଗୋଟିଏ କୁରାଢ଼ି କିଣିବାକୁ ବଳ ନାହିଁ। କଅଣ କରିବି ? କେମିତି କାଠ କାଟି ପରିବାର ପୋଷିବି ?"

ଜଳଦେବତା ପାଣିରେ ବୁଡ଼ିଗଲେ ଓ ଗୋଟିଏ ସୁନାର କୁରାଢ଼ି ଧରି ଆସି ତାକୁ ପଚାରିଲେ, "ଏଇଟି କ'ଣ ତୁମର କୁରାଢ଼ି ?"

କାଠୁରିଆ ସୁନା କୁରାଢ଼ି ଦେଖି ଲୋଭକଲାନାହିଁ। କହିଲା, "ନା, ଏଇଟି ସୁନାରେ ତିଆରି, ଏହା ମୋର ନୁହେଁ।"

ତହୁଁ ଜଳଦେବତା ପୁଣି ନଈରେ ବୁଡ଼ିଯାଇ ଗୋଟିଏ ରୂପାର କୁରାଢ଼ି ଆଣି ପଚାରିଲେ, "ଦେଖ, ଏଇଟା ତୁମର କି ନା ?"

ଏଥର ମଧ୍ୟ କାଠୁରିଆ କହିଲା, "ନା, ଏଟା ମୋର ନୁହେଁ।"



ଜଳଦେବତା ପୁଣି ଥରେ ପାଣିରେ ବୁଡ଼ିଲେ। ଏଥର ଲୁହା କୁରାଢ଼ିଟିଏ ଆଣି ଦେଖାଇ ପଚାରିଲେ, "ଏଇଟି କଅଣ ତୁମର କୁରାଢ଼ି ?"

କାଠୁରିଆ କୁରାଢ଼ିଟି ଭଲ କରି ଦେଖିସାରି ଆନନ୍ଦରେ

କହିଲା, "ହଁ, ଏଇଟି ମୋର। ଦୟାକରି ମୋତେ ମୋ ଲୁହା କୁରାଢ଼ିଟି ଦିଅନ୍ତୁ।"

ଜଳଦେବତା ତାକୁ ଲୁହାର କୁରାଢ଼ି ସଙ୍ଗେ ସୁନା ଓ ରୁପାର କୁରାଢ଼ି ଦୁଇଟି ମଧ୍ୟ ଦେଲେ। କହିଲେ, "ତୁମେ ସତ୍ୟବାଦୀ, ତୁମର ଲୋଭ ନାହିଁ। ତେଣୁ ମୁଁ ତୁମକୁ ଏ ସୁନା ଓ ରୂପାର କୁରାଢ଼ି ଦୁଇଟି ପୁରସ୍କାର ଦେଉଛି, ନିଅ।" କାଠୁରିଆ ତାହା ନେଇ ଆନନ୍ଦ ମନରେ ଘରକୁ ଫେରିଲା।

କାଠୁରିଆର ଜଣେ ପଡ଼ୋଶୀ ଏ କଥା ଶୁଣିପାରିଲା। ସେ ସେହିପରି ସୁନା ଓ ରୁପା କୁରାଢ଼ି ପାଇବାକୁ ମନରେ ଲୋଭ କଲା। ସେ ସେହି ନଦୀକୂଳକୁ ଗଲା। ଗଛରେ ଦୁଇ ତିନି ଚୋଟ ମାରି କୁରାଢ଼ିଟିକୁ ଜାଣିଜାଣି ନଈ ଭିତରକୁ ପକାଇଦେଲା ଓ ନଈ କୂଳରେ ବସି କାନ୍ଦିଲା। ପୂର୍ବପରି ଜଳଦେବତା ଆସି ତାକୁ କାନ୍ଦିବାର କାରଣ ପଚାରିଲେ। ସେ କହିଲା ଯେ ତା'ର କୁରାଢ଼ିଟି ପାଣିରେ ଖସିପଡ଼ିଛି। ସେ ଏକ ଗରିବ ଲୋକ। କୁରାଢ଼ିଟି ନମିଳିଲେ ତା' ପରିବାର ଭୋକରେ ରହିବେ।

ଜଳଦେବତା ନଈରୁ ଗୋଟିଏ ସୁନାର କୁରାଢ଼ି ଆଣି ତାକୁ ଦେଖାଇ ପଚାରିଲେ, "ଏଇଟି ତୁମର କି?"

ସୁନାର କୁରାଢ଼ିଟି ଦେଖିଲାକ୍ଷଣି ଲୋକଟି ଲୋଭରେ ପଡ଼ି କହିଲା, "ହଁ ହଁ, ଏଇଟି ମୋର।"

ଏହାଶୁଣି ଜଳଦେବତା କହିଲେ, "ତୁ ଲୋଭୀ ଓ ମିଛୁଆ। ତେଣୁ ସୁନା କୁରାଢ଼ି ପାଇବାର ଯୋଗ୍ୟ ନୋହୁଁ। ଏପରିକି ତୋର ଲୁହା କୁରାଢ଼ିଟି ମଧ୍ୟ ତୁ ଆଉ ପାଇବୁନାହିଁ।" ଏହା କହି ଜଳଦେବତା ସୁନା କୁରାଢ଼ିଟି ସହିତ ନଈ ଭିତରେ ଉଭେଇଗଲେ। କାଠୁରିଆ ମନ ଦୁଃଖରେ ଗାଁକୁ ଫେରିଲା।

ନିର୍ଲୋଭ ସତ୍ୟବାଦୀ ନର, ଲଭଇ ଭବେ ପୁରସ୍କାର।
ଯେ ମିଥ୍ୟା ଲୋଭ ଆଶ୍ରେ କରେ, ଦଣ୍ଡ ସେ ଲଭଇ ସଂସାରେ।

## କୁକୁଡ଼ା ଓ ବିଲୁଆ

ଗୋଟିଏ କୁକୁର ଓ ଗୋଟିଏ କୁକୁଡ଼ା ଭିତରେ ଭଲ ବନ୍ଧୁତା ଥିଲା। ଦିନେ ଦୁଇବନ୍ଧୁ ବୁଲିବାହାରିଲେ। ଦୁହେଁ ଗପ କରି ଯାଉ ଯାଉ ଗୋଟିଏ ବଣରେ ପହଞ୍ଚିଲେ। ସେତେବେଳକୁ ସଞ୍ଜ ହୋଇଯାଇଥିଲା। କୁକୁଡ଼ା କହିଲା, "ଗପ କରୁ କରୁ ସଞ୍ଜ ହେଇଗଲା। ଘରକୁ ଅନ୍ଧାରରେ ଫେରିପାରିବାନାହିଁ। ଏବେ ଏଠାରେ କିପରି ରାତି କଟାଇବା ?"

କୁକୁର କହିଲା, "ତୁମେ ଭୟ କରନାହିଁ। ଏଇ ଗଛର ଗୋଟାଏ ଉଚ୍ଚ ଡାଳରେ ବସି ରାତିଟି କଟାଇଦିଅ। ଗଛମୂଳରେ ଗୋଟାଏ କୋରଡ଼ ଅଛି। ମୁଁ ତା'ରି ଭିତରେ ରହିଯିବି। ସକାଳ ହେଲେ ପୁଣି ଦୁହେଁ ସାଙ୍ଗ ହୋଇ ବସାକୁ ଫେରିଯିବା।"

କଥାଟା କୁକୁଡ଼ାର ମନକୁ ପାଇଲା। ସେ ଉଡ଼ିଯାଇ ଗଛର ଗୋଟାଏ ଡାଳରେ ବସିଲା। କୁକୁର ଗଛର କୋରଡ଼ ଭିତରେ ଶୋଇଲା। ସକାଳ ହେଲେ କୁକୁଡ଼ାମାନେ ରାବନ୍ତି। ତେଣୁ ସକାଳ ଆଲୁଅ ଦେଖାଗଲାକ୍ଷଣି କୁକୁଡ଼ା ଗଛଡାଳ ଉପରେ ଥାଇ ରାବିଲା – କୁକ୍କୁଡୁକୁଁ, କୁକ୍କୁଡୁକୁଁ। ବଣ ଭିତରେ ଏହି ରାବ ଶୁଣାଯିବାରୁ ଗୋଟିଏ ବିଲୁଆ ଖୁସିହୋଇ ବିଚାରିଲା, "ଆଜି ମୋର ଭାଗ୍ୟ ଭଲ। କାହୁଁ ଗୋଟାଏ କୁକୁଡ଼ା ଆସିଛି। ବହୁତ ଦିନ ହେଲା କୁକୁଡ଼ା ମାଂସ ପେଟରେ ପଡ଼ିନାହିଁ। ଆଜି ପେଟପୂରା କରି କୁକୁଡ଼ା ମାଂସ ଖାଇବି।"

ଏହା ବିଚାରି ସେ ଗଛମୂଳରେ ଯାଇ ପହଞ୍ଚିଲା । କୁକୁଡ଼ାକୁ ଦେଖି ହସି ହସି କହିଲା, ‘‘ଭାଇ, ତୁମର ସ୍ୱରଟି କେଡ଼େ ମଧୁର । ଗୀତକୁ ମୋର ଭାରି ଆଦର । ତୁମ ଗୀତ ଶୁଣି ଦଉଡ଼ି ଆସିଲି । ମୁଁ ମଧ ଟିକିଏ ଗାଇଜାଣେ । ତୁମେ ଗଛରୁ ତଳକୁ ଓହ୍ଲାଇଆସ । ଦୁହେଁ ମିଶି କିଛି ସମୟ ଗୀତ ଗାଇ ମନ ଖୁସି କରିବା ।’’



କୁକୁଡ଼ା ତ ଭାରି ଚାଲାକ । ସେ ବିଲୁଆର ଚାଲାକି ବୁଝିପାରିଲା । କିନ୍ତୁ ସେ ମନକଥା ମନରେ ରଖି ହସି ହସି କହିଲା, ‘‘ହଁ ଭାଇ, ତୁମ କଥା ଶୁଣି ବଡ଼ ଖୁସିହେଲି । ଏଡ଼େ ସୁନ୍ଦର ସକାଳେ

ଗୀତ ଗାଇବାକୁ ମନ ହେବାର କଥା । ତେବେ ମୋର ଗୋଟିଏ ବନ୍ଧୁ ଗଛ କୋରଡ଼ରେ ଶୋଇଚନ୍ତି । ସେ ଭଲ ବାଦ୍ୟ ବଜାଇ ଜାଣନ୍ତି । ତାଙ୍କୁ ଡାକି ଉଠାଅ । ସେ ବାଜା ବଜାଇବେ । ଆମେ ଦୁହେଁ ମିଳି ଗୀତ ଗାଇବା । ଖୁବ୍ ମଜା ହେବ୍ ।''

ଏହା ଶୁଣି ବିଲୁଆ ଭାରି ଖୁସିହୋଇ ଗଛର କୋରଡ଼ ପାଖକୁ ଗଲା । ସେତେବେଳକୁ କୁକୁର ନିଦରୁ ଉଠି ସେ ଦୁହିଁଙ୍କର କଥାବାର୍ତ୍ତା ଶୁଣୁଥିଲା । ବିଲୁଆକୁ ଦେଖିଲାକ୍ଷଣି କୁକୁର କୋରଡ଼ ଭିତରୁ ବାହାରିପଡ଼ିଲା । ଏକା କୁଦାକେ ଆସି ବିଲୁଆର ଗଳାକୁ କାମୁଡ଼ି ଧରିଲା । ଗଛ ଉପରେ ଥାଇ କୁକୁଡ଼ା କହିଲା, ''ଆରେ ମୂର୍ଖ ବିଲୁଆ, ତୁ ମୋତେ ମାରି ଖାଇବାକୁ ଆସିଥିଲୁ; ଏବେ ମରେ । ତୋର କେବଳ ବୁଦ୍ଧି ଅଛି ବୋଲି ମନେକରିଥିଲୁ । ଆଉ କ'ଣ କାହାର ବୁଦ୍ଧି ନାହିଁ? ଅନ୍ୟକୁ ଠକିବାକୁ ଚେଷ୍ଟା କଲେ କି ଫଳ ମିଳେ ଏବେ ଦେଖ ।''

''ପରକୁ କଲେ ପ୍ରତାରଣା, ନିଜର ହାନି ହୁଏ ସିନା ।''

## ନିଜ ବୁଦ୍ଧିରେ କାମ କର

ଜଣେ ଲୋକ ଗୋଟାଏ ଗଧ କିଣିବାପାଇଁ ସାଥିରେ ପୁଅକୁ ନେଇ ହାଟକୁ ଗଲା । ହାଟରେ ଗୋଟିଏ ଭଲ ଗଧ କିଣି ବାପପୁଅ ତାକୁ ଘେନି ଘରକୁ ଫେରିଲେ । ବାପ ଗଧ ବେକର ଦଉଡ଼ି ଧରିଥାଏ, ପୁଅ ପଛରୁ ଅଡ଼ାଉଥାଏ । ଭଲ ଗଧଟିଏ ମିଳିଥିବାରୁ ଦୁହିଁଙ୍କର ମନ ଖୁସି ।

କିଛି ଦୂର ଆସିବା ପରେ ସେମାନେ କେତେଜଣ ବାଟୋଇଙ୍କୁ ଭେଟିଲେ । ସେମାନେ ବାପପୁଅଙ୍କୁ ଦେଖି କହିଲେ, ''ତୁମେ

ତୁମେ ବଡ଼ ଓଲୁ। ଗଧଟାଏ ନେଉଛ। ଗଧ ଚାଲିଛି, ତା' ସାଥିରେ ଦୁହେଁଯାକ ଧୂଳିଧୂସର ହୋଇ ଚାଲିଛ। କେହି ଜଣେ ଗଧ ଉପରେ ବସିଗଲେ ହୁଅନ୍ତାନାହିଁ?''

ଏହା ଶୁଣି ବାପା କହିଲା, ''ସତକଥା! ଗଧଟା ଥାଉଁ ଥାଉଁ ଦୁହେଁଯାକ ଚାଲି ଚାଲି ଯିବା କାହିଁକି? ପୁଅ, ତୁ ଗଧ ଉପରେ ବସ, ମୁଁ ଚାଲୁଛି।''

ପୁଅ ଗଧ ଉପରେ ବସିଗଲା। ବାପ ତା' ପଛେ ପଛେ ଚାଲିଲା।

କିଛି ଦୂର ଯିବାପରେ ବାଟରେ ଗୋଟିଏ ବୁଢ଼ୀ ଏମାନଙ୍କୁ ଦେଖି କହିଲା, 'ଓଃ, କି କଳିକାଳ ହେଲା? ଦେଖୁନ, ଭେଣ୍ଡା ଟୋକାଟା ଗଧ ଉପରେ ବସି ଆରାମରେ ଯାଉଛି; ବୁଢ଼ା ବାପା ତା' ପଛେ ପଛେ ଚାଲିଛି। ବୁଢ଼ା ସିନା ଗଧରେ ବସି ଗଲେ ତାକୁ ବାଧା ହୁଅନ୍ତା ନାହିଁ! ପୁଅଟାର କଅଣ ବାପର ଭଲମନ୍ଦକୁ ନଜର ଅଛି? ସେ ଖାଲି ନିଜର ସୁଖ ଦେଖୁଛି।''

ଏହା ଶୁଣି ପୁଅ ଗଧରୁ ଓହ୍ଲାଇପଡ଼ି କହିଲା, ''ବାପା, ବୁଢ଼ୀ କଅଣ କହିଲା ଶୁଣିଲ ତ? ପ୍ରକୃତରେ ମୋଠାରୁ ତୁମେ ଦୁର୍ବଳ। ତୁମେ ଗଧ ଉପରେ ବସ, ମୁଁ ଚାଲି ଚାଲି ଯାଉଛି।''

ତହୁଁ ବାପ ଗଧ ଉପରେ ବସିଲା ଓ ପୁଅ ତାକୁ ଅଡ଼େଇ ଅଡ଼େଇ ପଛରେ ଚାଲିଲା। 'ଏହିପରି କିଛି ଦୂର ଯିବା ପରେ ସେମାନେ ଗୋଟିଏ ଗାଁରେ ପହଞ୍ଚିଲେ। ଗାଆଁ ଦାଣ୍ଡରେ କେତେଜଣ ଲୋକ ଏମାନଙ୍କୁ ଦେଖି କହିଲେ, ''ଦେଖ, ଏ ଲୋକଟା କେଡ଼େ ସ୍ୱାର୍ଥପର! ନିଜେ ଗଧ ଉପରେ ବସି ଆରାମରେ ଯାଉଛି– ପୁଅଟା ଯେ କି କଷ୍ଟରେ ଧାଇଁଛି ଟିକିଏ ହେଲେ ଭାବୁନାହିଁ। ଏଥିରେ ପିଲାଏ ବାପମାଆଙ୍କୁ ମାନିବେ କିଆଁ?''

ଏହା ଶୁଣି ବାପ ପୁଅକୁ ଡାକି କହିଲା, "ଏମାନେ ଯାହା କହୁଛନ୍ତି ଠିକ୍ କଥା। ଚାଲିବାରେ ତୋତେ ନିଶ୍ଚୟ କଷ୍ଟ ହେଉଥିବ। ଆ, ମୋ ପଛକୁ ଲାଗି ଗଧଉପରେ ବସିଯାଆ।" ଏହିପରି ବାପପୁଅ ଦୁହେଁଯାକ ଗଧ ଉପରେ ବସି ଯିବାକୁ ଲାଗିଲେ।



କିଛି ଦୂର ଯିବାପରେ ସେମାନେ ଗୋଟିଏ ପୋଖରୀକୂଳରେ ପହଞ୍ଚିଲେ। କେତେଗୁଡ଼ିଏ ଝିଅ ପାଣି ନେବାପାଇଁ ପୋଖରୀକୁ ଆସିଥିଲେ। ସେମାନେ ଏ ଦୁହିଁଙ୍କୁ ଗଧ ଉପରେ ବସିଥିବା ଦେଖି କହିଲେ, "ମଉସା, ଏ ଗଧଟିକୁ କଅଣ ମାରିଦେବ?

ତୁମେ ଦୁଇଜଣ ଲୋକ ଗଧ ଉପରେ ବସିଛ। ସେ ବିଚରା ଦୁଇଜଣଙ୍କର ବୋଝ ବୋହିବ କିପରି ? ସେକଥା ଟିକିଏ ହେଲେ ଭାବୁନାହଁ। ବରଂ ତୁମେ ଦୁହେଁ ଗଧଟିକୁ ବୋହିନେଲେ ଭଲହୁଅନ୍ତା।''

ଦୁହେଁଯାକ ଗଧ ଉପରୁ ଓହ୍ଲାଇ ବିଚାର କଲେ, ''ଠିକ୍ କଥା, ଆମ ଦୁହିଁଙ୍କୁ ବୋହିଆଣିବାରେ ଗଧକୁ ଭାରି ବାଧା ହୋଇଥିବ। ବାକି ବାଟତକ ଆମେ ତାକୁ ବୋହିନେବା ଠିକ୍ ହେବ।''

ଏପରି ବିଚାରକରି ବାପ ପୁଅ ଦୁଇଖଣ୍ଡ ଦଉଡ଼ିରେ ଗଧର ଆଗଗୋଡ଼ ଓ ପଛଗୋଡ଼ ଦୁଇଟିକୁ ବାନ୍ଧିଦେଲେ। ମଝିରେ ଗୋଟିଏ ବାଉଁଶ ପୂରାଇ ବାପପୁଅ ବାଉଁଶର ଦୁଇ ମୁଣ୍ଡକୁ କାନ୍ଧରେ ରଖି ଚାଲିଲେ। ବାଉଁଶରେ ଉପରମୁହାଁ ହୋଇ ଝୁଲିବାରୁ ଗଧକୁ ବଡ଼ ଖରାପ ଲାଗିଲା— ସେ ଛଟପଟ ହେଲା।

ବାଟରେ ଗୋଟିଏ କାଠପୋଲ ପଡ଼ିଲା। ଲୋକେ ଦେଖିଲେ, ଦୁଇଜଣ ଲୋକ ଗୋଟିଏ ଜୀଅନ୍ତା ଗଧକୁ ବାନ୍ଧି ଭାର କରି ନେଉଛନ୍ତି। ସେମାନେ ଭାବିଲେ— ଏ ଲୋକ ଦୁଇଟା ପାଗଳ ! ଜୀଅନ୍ତା ଗଧକୁ ଏପରି କ'ଣ କିଏ ନିଏ ? ସେମାନେ ହସି ହସି ଅଥୟ ହୋଇଗଲେ।

ଏହି ସମୟରେ ଗଧ ଛାଟିପିଟି ହେବାରୁ ତା' ଗୋଡ଼ର ଦଉଡ଼ି ଛିଣ୍ଡିଗଲା ଓ ସେ ପୋଲ ତଳକୁ ଖସିପଡ଼ିଲା। ପୋଲତଳେ ନାଳରେ ପାଣି ସୁଅ ଚାଲିଥିଲା। ସେଥିରେ ସେ ଭାସିଗଲା। ବାପପୁଅ ମୁଣ୍ଡରେ ହାତ ଦେଇ ବସିଗଲେ।

ପରକଥାରେ କାମକଲେ ଏମିତି ଲୋକହସା ହେବାକୁ ହୁଏ।

# ପରାଧୀନତା ପରମ ଦୁଃଖ

ଜଣେ ଲୋକ ଗୋଟିଏ କୁକୁର ପୋଷିଥିଲା । ସେ ତାକୁ ପ୍ରତିଦିନ ମାଂସ ଖାଇବାକୁ ଦେଉଥିବାରୁ ସେ ବେଶ୍ ମୋଟା ହୋଇଥିଲା ଓ ତା'ର ଦେହଟି ଚିକ୍କଣ ଦିଶୁଥିଲା । ଦିନେ ରାତିରେ କୁକୁରଟି ଗୋଟିଏ ହେଟାବାଘକୁ ଦେଖିଲା । ହେଟା ବାଘର ହାଡ଼ ଗଣିହୋଇଯାଉଥିଲା ଓ ତା' ଦେହର ରୁମ ଉପୁଡ଼ିଯାଇଥିଲା । ତାକୁ ଦେଖି କୁକୁର ଜାଣିପାରିଲା ଯେ ଖାଇବା ବିନା ତା'ର ଏପରି ଅବସ୍ଥା ହୋଇଛି ।

ହେଟା ବାଘ ପଚାରିଲା, "ତୁମେ କେଡ଼େ ଭଲ ଦେଖାଯାଉଛ । ତୁମ ଦେହ କେଡ଼େ ଚିକ୍କଣ ? ଆଖି ଯୋଡ଼ିକ କେଡ଼େ ଉଜ୍ଜ୍ୱଳ ? ମୁଁ ରାତିଯାକ ବୁଲି ବୁଲି ମଧ୍ୟ ପେଟପୂରା ଖାଇବାକୁ ପାଉନାହିଁ । ତୁମେ କିପରି ଏତେ ଖାଇବାକୁ ପାଉଛ ?"

କୁକୁର କହିଲା, "ଭାଇ, ମୋର କେବେହେଲେ ଖାଇବାର ଅଭାବ ନାହିଁ । ପ୍ରତିଦିନ ମୋର ଖାଉନ୍ଦ ମୋତେ ମାଂସ ଖାଇବାକୁ ଦିଅନ୍ତି । ତେଣୁ ମୋର ଦେହଟି ଏପରି ମୋଟା ହୋଇଛି, ମୋ ଦେହରେ ମଧ୍ୟ ବହୁତ ବଳ ଅଛି ।"

ହେଟାବାଘ ଆଶ୍ଚର୍ଯ୍ୟହୋଇ ପଚାରିଲା, "ସେ ତୁମକୁ ପ୍ରତିଦିନ କାହିଁକି ମାଂସ ଖାଇବାକୁ ଦିଅନ୍ତି ?"

କୁକୁର କହିଲା, "ମୁଁ ତାଙ୍କପାଇଁ କିଛି କାମ କରେ । ଅବଶ୍ୟ କାମଟା କଠିନ ନୁହେଁ । ରାତିରେ ମୁଁ ଚେଇଁ ରହି ମାଲିକଙ୍କ ଘର ଜଗେ ।" ହେଟାବାଘ କହିଲା, "ଏ କାମଟା ଖୁବ୍ ସହଜ ।

ଏତିକି କାମ କରି ପେଟପୂରା ଭଲ ଖାଇବାକୁ ମିଳିବା ଖୁବ୍ ସୁଖର କଥା। ଏ କାମ ମୁଁ ବି ସହଜରେ କରିପାରିବି। ମୋତେ ତୁମ କାମରେ ରଖାଇଦିଅନ୍ତ କି ମୁଁ ସୁଖରେ ରହନ୍ତି। ମୋତେ ଦେଖି ଜାଣିପାରୁଥିବ ଯେ ଆଉ କିଛି ଦିନ ପରେ ମୋର ପ୍ରାଣ ରହିବନାହିଁ।''



କୁକୁର କହିଲା, ''ହଁ, ତୁମେ ତାହାହିଁ କର। ବଣରେ ଖରାବର୍ଷାରେ ବୁଲି ଉପାସ ରହିବାଠାରୁ ଘର ଭିତରେ ରହି ନିଶ୍ଚିନ୍ତରେ ଖାଇବାକୁ ପାଇବା ଅନେକ ଭଲ।''

ଏହି ସମୟରେ ହେଟାବାଘ ଦେଖିଲା ଯେ କୁକୁରର ବେକ ଚାରିପାଖେ ଗୋଟିଏ ଚମଡ଼ା ପଟି ରହିଛି। ସେ ପଚାରିଲା, ''ଭାଇ, ତୁମ ବେକରେ ସେଇଟା କଅଣ ?''

କୁକୁର କହିଲା, ''ସେଇଟା ଗୋଟାଏ ଚମଡ଼ା ପଟି। ଦିନବେଳା ମୋର ଖାଉନ୍ଦ ସେଥିରେ ଗୋଟିଏ ଲୁହା ଜଞ୍ଜିର ଲଗାଇ ମୋତେ ବାନ୍ଧିରଖନ୍ତି, ରାତିହେଲେ ଫିଟାଇଦିଅନ୍ତି। ଏଥିରେ ମୋର କିଛି ଅସୁବିଧା ହୁଏନାହିଁ। ଦିନଯାକ ମୁଁ ବନ୍ଧା ହୋଇ ଶୋଇଥାଏ; ଖାଇବାବେଳ ହେଲେ ମତେ ଖାଇବାକୁ ଦିଆଯାଏ ଓ ମୁଁ ଖାଇସାରି ପୁଣି ଶୋଇଯାଏ। ଦିନଯାକ ଶୋଇବା ଓ ଖାଇବା ଛଡ଼ା ମୋର ଆଉ କିଛି କାମ ନଥାଏ।''

ହେଟାବାଘ ବ୍ୟସ୍ତ ହୋଇ କହିଲା, ''ଭାଇ, ତାହାହେଲେ ତୁମେ ଯେଉଁ ଖାଇବାକୁ ପାଅ ସେଥିପାଇଁ ତୁମେ କାମ କର, ତାହା ସଙ୍ଗେ ତୁମର ସ୍ୱାଧୀନତା ମଧ୍ୟ ବିକିଦେଇଛ।''

କୁକୁର କହିଲା, ''ହଁ, ତୁମେ କହିପାର ଯେ ମୁଁ ମୋର ସ୍ୱାଧୀନତା ମଧ୍ୟ ହରାଇଛି।''

ଏହା ଶୁଣି ହେଟାବାଘ କହିଲା, ''ଭାଇ, ଭଲ ଖାଇବାପାଇଁ ପରାଧୀନ ହୋଇପାରିବିନି। ମୁଁ ବରଂ ସ୍ୱାଧୀନ ଭାବରେ ବୁଲି ଭୋକରେ ମରିବି, କିନ୍ତୁ ପରର ଅଧୀନ ହୋଇ ରହିପାରିବି ନାହିଁ। ତୁମେ ଯାହାକୁ ସୁଖ ମଣୁଛ, ମୋ ମତରେ ସେ ପରମ ଦୁଃଖ।''

ସ୍ୱାଧୀନତା ଅଟେ ପରମ ଧନ
ତା' ବିନା ବିଫଳ ସିନା ଜୀବନ।

# ଭୁଲରୁ ଶିକ୍ଷା

ଗୋଟିଏ କୁକୁର ଦିନେ ରାତିରେ ତା' ମାଲିକଙ୍କ ଘରର ବାହାର ବାରଣ୍ଡାରେ ଶୋଇଥିଲା। ଏହି ସମୟରେ ଗୋଟିଏ ହେଟାବାଘ ତାହାକୁ ଦେଖି ଖାଇବାକୁ ଆସିଲା। କୁକୁର ଜାଣିପାରିଲା ଯେ ହେଟାବାଘ ତାକୁ ମାରି ଖାଇବ। କିନ୍ତୁ ସେ ଜୀବନର ଆଶା ଛାଡ଼ି ନଦେଇ ଗୋଟିଏ ଫନ୍ଦି କଲା। ସେ ଉଠିପଡ଼ି କହିଲା, ''ମୁଁ ଜାଣେ ତୁମେ ମୋତେ ଖାଇବାକୁ ଆସିଛ। ସେଥିରେ ମୋର ଦୁଃଖ ନାହିଁ। ତୁମେ ଖାଇବ ବୋଲି ତ କୁକୁରର ଜନ୍ମ। କିନ୍ତୁ ଦେଖ, ମୋ ଦେହ କେଡ଼େ ପତଳା। ମୋ ଦେହରେ କିଛି ମାଂସ ନାହିଁ। ସେଥିରେ ତୁମ ପେଟର କଣେ ହେଲେ ପୂରିବ ନାହିଁ। ଆଜି ମୋ ଖାଉନ୍ଦଙ୍କ ଝିଅର ବିଭାଘର। ଭୋଜି ହେଉଛି। ମୁଁ ଭୋଜି ଖାଇସାରିଲେ ମୋଟା ହୋଇଯିବି। ସେତେବେଳେ ମୋତେ ଖାଇଲେ ତୁମ ପେଟ ପୂରିବ। ତେଣୁ ଆଜି ରାତିକ ଅପେକ୍ଷା କର, କାଲି ସକାଳୁ ଆସି ମୋତେ ଖାଇବ।''

ହେଟାବାଘ ବିଚାରିଲା, ''କୁକୁର ଯାହା କହିଲା ସତ। ସେ ଭୋଜି ଖାଇସାରିଲେ ମୋଟା ହୋଇଯିବ। ସକାଳେ ତାକୁ ଖାଇଲେ ଭଲ ହେବ।'' ଏହା ଭାବି ସେ ଚାଲିଗଲା।

କୁକୁର ହେଟାବାଘ ମୁହଁରୁ ବଞ୍ଚିଗଲା। ଏହାପରେ ସେ ଯାଇ ଘରର ଛାତ ଉପରେ ଶୋଇଲା। ସକାଳୁ ହେଟାବାଘ ଆସି ଦେଖିଲା କୁକୁର ଛାତ ଉପରେ ଶୋଇଛି। ସେ ଡାକିଲା, ''ଆରେ, ତଳକୁ ଓହ୍ଲାଇଆ। ରାତିରେ ଭୋଜି ଖାଇ ତୁ ମୋଟା

ହେଇଯାଇଥିବୁ। ମୋତେ ଭାରି ଭୋକ ହେଲାଣି, ଶୀଘ୍ର ତଳକୁ ଆସିଲେ ମୁଁ ତୋତେ ଖାଇବି।''

କୁକୁର ଛାତ ଉପରେ ଥାଇ କହିଲା, ''ନା, ମୁଁ ତଳକୁ ଯାଇ ପାରିବି ନାହିଁ। ଆରେ ଓଲୁ, ତୋତେ ଗୋଟିଏ କଥା



କହିଦେଉଛି। ଏଣିକି ଯେତେବେଳେ ମୋତେ ପଦାରେ ଶୋଇଥିବାର ଦେଖିବୁ ସଙ୍ଗେ ସଙ୍ଗେ ଖାଇଦେବୁ– ମୁଁ ଭୋଜି ଖାଇ ମୋଟା ହେବାଯାଏଁ ଅପେକ୍ଷା କରିବୁ ନାହିଁ।''

ହେଟାବାଘ ଦେଖିଲା, କୁକୁରକୁ ଆଉ ଧରିହେବନାହିଁ। ସେ ଫେରି ଯାଉ ଯାଉ ମନେ ମନେ ଭାବିଲା, ''ପ୍ରକୃତରେ ମୁଁ ଭୁଲ କରିଛି। ସେତେବେଳେ କୁକୁରକୁ ନଖାଇ ଛାଡ଼ିଦେବା ଠିକ୍ ହୋଇନାହିଁ। ଏଣିକି ଏପରି ଭୁଲ ଆଉ କେବେ କରିବିନାହିଁ।''

□ □ □